ଜଳଜନ୍ତୁ ସିରଜ

ତୃତୀୟ

# ତିମି

ଲେଖକ

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ଓଡ଼ିଶା ବୁକ୍ ଷ୍ଟୋର

Digitized by srujanika@gmail.com



—୧—

ସମସ୍ତେ ଜାଣନ୍ତି, ଏ ପୃଥିବୀରେ ହାତୀ ସବୁଠାରୁ ବଡ଼ ଜୀବ । କିନ୍ତୁ ସମୁଦ୍ରର ପାଣି ଭିତରେ ଏଭଳି ଜୀବ ଅଛନ୍ତି, ଯାହାଙ୍କ ପାଖରେ ହାତୀ ଅତି ନଗଣ୍ୟ—ବାଘ ପାଖରେ ଗୋଟିଏ ସାମାନ୍ୟ ବିଲେଇଛୁଆ ପରି ।

ସମୁଦ୍ରର ଏହି ବିରାଟ ରାକ୍ଷସ ଭଳି ଜୀବ ହେଉଛି ତିମି ।

ତିମି ପାଣି ଭିତରେ ବାସକରେ । ତାହାର ଗୋଡ଼ ନାହିଁ । ସେ ଶୁଖିଲାରେ ମାଟି ଉପରେ ଚାଲିପାରିବ ନାହିଁ କି ଚଳପାରିବ ନାହିଁ । ଏହି କାରଣରୁ ଆଗେ ଅନେକେ ଏହାକୁ ମାଛଜାତୀୟ ଜୀବ ବୋଲି କହୁଥିଲେ । ମାତ୍ର ତିମି ମାଛ ନୁହେ—ସ୍ତନ୍ୟପାୟୀ ଜନ୍ତୁ । ମାଈ ମାଛ ଅଣ୍ଡା ଦିଏ; ମାତ୍ର ମାଈ ତିମି ଛୁଆ ଜନ୍ମ କରେ । ମା ଛୁଆଙ୍କୁ ନିଜର ସ୍ତନ ଖୁଆଇ ବଢ଼ାଏ । ମାଛ ଦେହର ରକ୍ତ ଥଣ୍ଡା; କିନ୍ତୁ ତିମି ଦେହର ରକ୍ତ ଗରମ—ଠିକ୍ ଆମମାନଙ୍କ ଦେହର ରକ୍ତ ପରି । ମାଛ ତା ଗାଲିଣି ବା ଫୁଲ ଦ୍ୱାରା ନିଃଶ୍ୱାସ ନିଏ, ପ୍ରଶ୍ୱାସ ଛାଡ଼େ । ମାତ୍ର ଶୁଖିଲାରେ ଥିବା ଅନ୍ୟାନ୍ୟ ପଶୁ ଭଳି

Digitized by srujanika@gmail.com

ତିମିର ଗୁଣ୍ଡ ଭିତରେ ଫୁସ୍‌ଫୁସ୍ ରହିଛି । ତାହାର ସାହାଯ୍ୟରେ ସେ ନିଃଶ୍ୱାସ ନଏ ଓ ପ୍ରଶ୍ୱାସ ଛାଡ଼େ । ମାଛର ଦେହସାକ କାତି, ତିମି ଦେହରେ ଚକ୍‌କଣ ଚମଡ଼ା ଏବଂ ତା ଉପରେ ସ୍ଥାନେସ୍ଥାନେ ଶ୍ରେଷ୍ଠ ଲୋମ ଥାଏ । ଏହାର ଲାଞ୍ଜ ମାଛ ଲାଞ୍ଜ ପରି ନୁହେ । ମାଛ ଲାଞ୍ଜର ଶେଷ ଅଂଶ ଓସାରରେ ତଳ ଉପର ହୋଇ ରହିଥାଏ; କିନ୍ତୁ ତିମି ଲାଞ୍ଜର ଶେଷ ଅଂଶର ଚଉଡ଼ା ଦୁଇ କଡ଼କୁ । ପଣ୍ଡିତ-ମାନେ କହନ୍ତି, ଆଗେ ତିମି ଦେହରେ ଚାରିଟା ଗୋଡ଼ କୁମ୍ଭୀର ଗୋଡ଼ ପରି ଥିଲା । କାଳକ୍ରମେ ପଛର ଗୋଡ଼ ଦୁଇଟା ଲୋପ ପାଇଯାଇଛି; ଆଗ ଗୋଡ଼ ଦୁଇଟା ତାହାର ଗାଲ ବା ଡେଣାରେ ପରିଣତ ହୋଇଯାଇଛି । ଭଲରୂପେ ପରୀକ୍ଷା କଲେ ଦେଖାଯିବ ଯେ, ସେ ଗାଲରେ ପଶୁ ଗୋଡ଼ର ଆଙ୍ଗୁଠି ପରି ପାଞ୍ଚଟି ଲେଖାଏ ଆଙ୍ଗୁଠି ରହିଛି ।

ମା ତିମିର ଗୁଣ୍ଡରେ ଦୁଇଟି ସ୍ତନ ଥାଏ । ପାଣି ଭିତରେ ଛୁଆ ଜନ୍ମ ହୁଏ । ଯେତେଦିନ ପର୍ଯ୍ୟନ୍ତ ଛୁଆ ସମର୍ଥ ହୋଇ ନ ଥାଏ, ସେତେଦିନଯାଏ ମା ତାକୁ ପାଖରେ ରଖି ସ୍ତନ ଖୁଆଏ । ଛୁଆ ଉପରେ ମା ତିମିର ସ୍ନେହମମତା ଖୁବ୍ ବେଶି ।

—୨—

ତିମି ପ୍ରଧାନତଃ ଦୁଇ ଶ୍ରେଣୀର । ଦନ୍ତହୀନ ତିମି ଓ ଦାନ୍ତ ଥିବା ତିମି । ଦନ୍ତହୀନ ତିମି ଆକାରରେ ସବୁଠାରୁ ବଡ଼ । ଏମାନଙ୍କ ପାଟିର ଉପର ପାଖରେ ଝାଣୁଆ ମାଢ଼ ରହିଥାଏ । ଏ ମାଢ ପ୍ରଭି ଗୋଟାଏ ଦୁଇଟା ନୁହେ; ଦୁଇଶହରୁ ତିନଶହ ପର୍ଯ୍ୟନ୍ତ ମାଢ ସମାନ୍ତରାଳ ଭାବରେ ଉପର ପାଟିରେ ଝୁଲନ୍ତା ଅବସ୍ଥାରେ ଥାଏ । ମଝିରେ ଥିବା ମାଢ଼ଗୁଡ଼ିକ ପ୍ରାୟ ତିନ ମିଟର ଲମ୍ବା ହୋଇଥାଏ ।

Digitized by srujanika@gmail.com

ଏହି ଦନ୍ତହୀନ ତିମିକୁ ପ୍ରକୃତ ତିମି କୁହାଯାଏ । ଏଗୁଡ଼ିକର ଆକାର ଯେପରି ବିରାଟ, ସ୍ୱଭାବ ମଧ୍ୟ ସେହିପରି ହିଂସ୍ର । ଗୋଟିଏ ଗୋଟିଏ ତିମି ସାଧାରଣତଃ ପଚାଶରୁ ଷାଠିଏ ହାତ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । ସେହି ତୁଳନାରେ ଦେହର ଗୋଲେଇ । ଦେହର ଓଜନ ଅନ୍ତତଃ ସ୍ତଳଣି ବା ପଇଁସ୍ତଳଣିଟା ହାତୀର ଓଜନ ସଙ୍ଗେ ସମାନ ହେବ । ଏପର୍ଯ୍ୟନ୍ତ ସବୁଠାରୁ ବଡ଼ ଯେଉଁ ତିମିଟି ଧରାପାଇଛି, ତାହା ଲମ୍ବରେ ୩୩ ମିଟର ବା ୭୪ ହାତ ଥିଲା; ଓଜନ ଥିଲା ୨୫୪ ମେଟ୍ରିକ୍ ଟନ ବା ୬,୭୨୩ ମହଣ ।

ଗୋଟିଏ ସାଧାରଣ ପଚାଶ ଷାଠିଏ ହାତ ଲମ୍ବର ମା ତିମି ଯେଉଁ ପିଲା ପ୍ରସବ କରେ, ଜନ୍ମ ସମୟରେ ତାହାର ଦେହ ସତର ଅଠର ହାତ ପର୍ଯ୍ୟନ୍ତ ଲମ୍ବ ହୋଇଥାଏ । ସେହି ତୁଳନାରେ



ମୋଟା, ବିରାଟ ଶରୀର । ସେତେବେଳେ ତା ଦେହର ଓଜନ ଥାଏ ଅଠ ଟନ ବା ପ୍ରାୟ ଦୁଇଶହ ମହଣ । ଜନ୍ମ ସମୟରେ ଯାହାର ଆକାର ଏପରି, ଯୌବନରେ ସେ କଅଣ ନ ହେବ ?

ଗୋଟିଏ ମଧ୍ୟବୟସର ତିମି ପାଟି ମେଲାକଲେ ଦୁଇ ଓଠ ମଧ୍ୟରେ ବାର ଚଉଦ ହାତ ଫାଙ୍କ ରହିପିବ । ପାଟି ତ ନୁହେଁ,

Digitized by srujanika@gmail.com

ଯବଡ ଗୁମ୍ଫା । ସେ ପାଟି ଭିତରେ ଗୋଟାଏ ବଡ଼ ହାଣ୍ଡି ଅକ୍ଲେଶରେ ଠିଆ ହୋଇ ରହିପାରିବ କିମ୍ବା ଯାଆସ କରି-ପାରିବ । ଏହି ତିମି ପ୍ରଶାନ୍ତ ମହାସାଗର ଓ ଆଟ୍‌ଲାଣ୍ଟିକ୍ ମହାସାଗରରେ ବହୁ ପରିମାଣରେ ବାସ କରନ୍ତି ।

ଦନ୍ତହୀନ ତିମିର ପାଟି ଭିତରେ ଗୋଟାଏ ସରୁ ଚମଡ଼ାର ଜାଲି ରହିଥାଏ । ମୁଣ୍ଡ ଉପରେ ଦୁଇଟା ଛିଦ୍ର । ସେ ପାଣିରେ ପହଁରି ବୁଲୁଥିବାବେଳେ ତା ପାଟି ମେଲା କରି ରଖିଥାଏ । ସେତେବେଳେ ବହୁ ପରିମାଣ ପାଣି ତା ପାଟି ଭିତରକୁ ପଶି ଯାଏ । ନଈବଢ଼ି ସମୟରେ ହଠାତ୍ ବନ୍ଧ ଭାଙ୍ଗିଗଲେ ଯେପରି



ପାଣିର ସୁଅ ପଡ଼ଯାଏ, ତିମି ପାଟିରେ ପାଣି ପଶିଲାବେଳେ ସେହିପରି ଜଣାଯାଏ । ପ୍ରତି ମୁହୂର୍ତ୍ତରେ ତିମି ତା ପାଟି ବନ୍ଦ କରି-ଦେଉଥାଏ । ସେତେବେଳେ ପାଟି ଭିତରେ ଥିବା ପାଣିତକ ମୁଣ୍ଡ ଉପର ଛିଦ୍ର ଦେଇ ପିଚ୍‌କାରି ମାରିଲା ପରି ଉପରକୁ ଉଠିଆସେ । ଦୂରରୁ ଜଣାଯାଏ, ସତେ ଯେପରି ଗୋଟାଏ ଝରଣାରୁ ପାଣି ଉପରକୁ ଉଠିଯାଉଛି କିମ୍ବା ପାଣିର ଢଡ଼ବାଣ ମାରୁଛି ।

Digitized by srujanika@gmail.com

ପାଟି ଭିତରେ ପାଣି ପଶିଗଲାବେଳେ ସେଥିରେ ଖେଳବୁଲୁଥିବା ଛୋଟଛୋଟ ମାଛ, ବେଙ୍ଗଫଳ, ପୋକଯୋକ ଆଦି ପାଟି ଭିତରକୁ ଚାଲିଯାଆନ୍ତି । ତିମି ପାଟି ବନ୍ଦ କରିଦେଲେ ପାଣିସବୁ ତ ବାହାରି ଆସେ; ଯେଉଁ ଛୋଟ ମାଛ ବା ପୋକଯୋକ ଥାଆନ୍ତି, ସେଗୁଡ଼ିକ ଜାଲରେ ଲାଗି ପାଟି ଭିତରେ ରହି ଯାଆନ୍ତି । ତିମି ସେହିମାନଙ୍କୁ ଖାଇ ବଞ୍ଚେ । ସେ ଏତେ ବିରାଟ ଦେହ ଓ ପର୍ବତଗୁମ୍ଫା ଭଳି ପାଟି ବହିଥିଲେ ମଧ୍ୟ ତା ତଣ୍ଟିର କଣା ଅତି ସାନ, ପୁଣି ଚମ ଜାଲଲେ ତାହା ଯୋଡ଼ାଇ ହୋଇ ରହିଥାଏ । ସେହି କାରଣରୁ ବଡ଼ ମାଛ କି ସାମାନ୍ୟ ମୋଟା ଜୀବଜନ୍ତୁ, ଏପରି କି ବୁଖଣ୍ଡେ ଲମ୍ବର ମାଛ ବି ସେ ଖାଇପାରେ ନାହିଁ । କେବଳ ଛୋଟ ଛୋଟ ମାଛ,ମାଛଯାଆଁଳ, ପୋକଯୋକ, ସମୁଦ୍ର ପାଣିରେ ଭାସୁଥିବା ଦଳ, ଘାସପତ୍ର ଆଦି ତାର ଏକମାତ୍ର ଖାଦ୍ୟ । ଏହି ଖାଦ୍ୟ ଖାଇ ସେ ବଞ୍ଚେ ଓ ତାହାର ବିଶାଳ ଦେହ ଗଠନ କରେ ।

ବୋତଲ ବେକ ପରି ସରୁ ତଣ୍ଟି ପରେ ତିମିର ପ୍ରକାଣ୍ଡ ପେଟ । ତାହା ଗୋଟାଏ ଲମ୍ବା ହଲ୍ ଘରର ଭିତର ବା ଛୋଟ ହ୍ରଦ ପରି ବୋଧହେବ । ସେହି ପେଟ ଭିତରେ ମନୁଷ୍ୟ ବା କି ଛାର ! ଦୁଇ ତିନଟା ହାତୀ ଅକ୍ଳେଶରେ ବୁଲବୁଲ କରିପାରିବେ ।

ଦନ୍ତହୀନ ତିମିର ପାଟି ଉପର ପାଖ ସରୁ ଓ ତଳ ପାଖ ମୋଟା । ଏମାନଙ୍କ ଆଖି ଅତି ସାନ । କାନ ଆଦୌ ପଦାକୁ ଦେଖାଯାଏ ନାହିଁ ।

ଭାରତ ମହାସାଗରରେ ଗୋଟାଏ ପ୍ରକାର ଦନ୍ତହୀନ ତିମି ଦେଖାଯାଆନ୍ତି, ସେମାନଙ୍କ ମୁହଁ ଛୋଟ ଓ ସରୁ । ଏମାନେ

Digitized by srujanika@gmail.com

ସବୁଠାରୁ ବେଶି ଲମ୍ବା ହୋଇଥାଆନ୍ତି । ଏହି ଶ୍ରେଣୀର ସାଧାରଣ ତିମିର ଦେହ ୭୦ ହାତରୁ ୭୫ ହାତ ପର୍ଯ୍ୟନ୍ତ ଲମ୍ବ ହୋଇଥାଏ ।



( ଭାରତ ମହାସାଗରର ତିମି )

ପ୍ରଶାନ୍ତ ମହାସାଗରରତିମି ଅପେକ୍ଷା ଏହାର ଦେହଟା ଟିକଏ ସରୁ । ଏହି ଜାତିସ୍ଥ ତିମିକୁ ଇଂରାଜୀରେ 'ସ୍ପେର୍ କସ୍ୱାଲ୍' କୁହାଯାଏ ।

ଏମାନଙ୍କ ବ୍ୟକ୍ତିତ ଆକାର ଓ ଦେହର ଗଢ଼ଣ ଅନୁସାରେ ଆଉ କେତେ ଜାତିର ତିମି ବି ଅଛନ୍ତି । ଯଥା— ବାମନ ତିମି, ସିଧାପିଠି ତିମି, ମାଳଦନ୍ତି ତିମି ।





( ସିଧାପିଠି ତିମି ) ( ବାମନ ତିମି )

ସିଧାପିଠି ତିମି ପଚିଶ ହାତ ପର୍ଯ୍ୟନ୍ତ ବଢ଼େ । ଏହାର ଗାଲ ସାନ; ଦେହ ଚକ୍‌କଣ ।

ବାମନ ତିମି ତିମିଜାତି ଭିତରେ ସବୁଠାରୁ ସାନ । ଏମାନଙ୍କ ଦେହ ତିରିଶ ହାତ ପର୍ଯ୍ୟନ୍ତ ଲମ୍ବା । ପିଠି ପାଖଟା ସିଧା ଓ ପେଟ ପାଖ ଅର୍ଦ୍ଧବୃତ୍ତ ପରି ଉହଳ ପଡ଼ିଥାଏ । ଏମାନଙ୍କ ଗାଲ ବଡ଼ ଓ ଲମ୍ବା ।

Digitized by srujanika@gmail.com



( ନୀଳବର୍ଣ୍ଣ ତିମି )

ନୀଳବର୍ଣ୍ଣ ତିମି ସବୁ ତିମିଙ୍କଠାରୁ ବେଶି ଲମ୍ବା ଓ ବଡ଼ । ଏହାର ଦେହ ଅତି ଚକ୍‌ଚକଣ ଓ ରଙ୍ଗ ଈଷତ୍ ନୀଳବର୍ଣ୍ଣ । ତେଣୁ ଏହାର ଏପରି ନାମ ହୋଇଛି ।



ଦାନ୍ତ ଥିବା ତିମି ସାଧାରଣତଃ ଦୁଇ ଜାତିର । ଗୋଟିଏ କାଠଗଡ଼ମୁହାଁ ତିମି ଓ ଅନ୍ୟଟି ସମୁଦ୍ର-ବାସ ।

କାଠଗଡ଼ମୁହାଁ ତିମିର ମୁଣ୍ଡ ଗୋଟାଏ ମୋଟା କାଠଗଡ଼ ପରି ଦେଖାଯାଏ । ଏହି ମୁଣ୍ଡ ତାହାର ସମଗ୍ର ଦେହର ତିନଭାଗରୁ ଏକଭାଗ ହେବ । ଏହି ତିମି ଯେପରି ଭୀଷଣ, ସେହିପରି କୁତ୍ସିତ ଦେଖାଯାଏ ।

ଏହି ଦାନ୍ତ ଥିବା ତିମିମାନଙ୍କ ପାଟି ଭିତରେ ଜାଲି ନ ଥାଏ । ତେଣୁ ସେମାନେ ବଡ଼ ବଡ଼ ଜୀବଜନ୍ତୁଙ୍କୁ ଖାଇପାରନ୍ତି ବା ଅବାଧରେ ଗିଳି ଦିଅନ୍ତି । ସମୁଦ୍ରର ବଡ଼ ମାଛ ଏମାନଙ୍କର ପ୍ରଧାନ ଖାଦ୍ୟ ।



କାଠଗଡ଼ମୁହାଁ ତିମି ପାଟିର ଉପର ପାଖ ଖୁବ୍ ମୋଟା ଓ ତଳପାଖ ଅତି ସରୁ । ଦାନ୍ତ ନ ଥିବା ତିମି ମୁହଁର ଠିକ୍ ବିପରୀତ ।

Digitized by srujanika@gmail.com

ଏମାନଙ୍କ ମୁହଁର ଦୁଇ ପାଟିରେ ମୁନଆଁ ଓ ଟାଣ ଦାନ୍ତ ପୂରି ରହିଥାଏ । ଗୋଟିଏ ଗୋଟିଏ ଦାନ୍ତ ପଚଶରୁ ତିରିଶ ସେ: ମି: ପର୍ଯ୍ୟନ୍ତ ଉଚ୍ଚ । ଏହା ଏତେ ମୁନଆଁ ଯେ ଦୁଇପାଖ ଦାନ୍ତର ଚାପ ପାଇଲେ ଶୁଖିଲା ମୁଣ୍ଡିଆ କାଠ ବି କଣା ହୋଇଯିବ ।

ଏହି ତିମି ସାଧାରଣତଃ ୪୦ ବା ୪୫ ହାତ ପର୍ଯ୍ୟନ୍ତ ଲମ୍ବା ହୁଏ । ଅନ୍ୟ ତିମିଅପେକ୍ଷା ଏହାର ଦେହ ବେଶି ମୋଟା ଓ ଦେହରେ ଚର୍ବି ଅତି ଅଧିକପରିମାଣରେ ଥାଏ,ଚମତଳେ ପ୍ରାୟ ତିରିଶ ସେ.ମି. ବହଳର ଚର୍ବି ମାଂସ ଉପରେ ବୋଳିହୋଇ ରହିଥାଏ । ଗୋଟିଏ ଷାଠିଏ ହାତ ଲମ୍ବ ତିମି ଦେହରୁ ୨୮୦ ପିମ୍ପା ତେଲ ଓ ଚବିଶ ପିମ୍ପା ମହମ ବାହାରିଥିଲା । ଗୋଟିଏପିମ୍ପାରେ ପ୍ରାୟ ଦେଢ଼କୁଇଣ୍ଟାଲ ବା ତିନମହଣ ଛଅସେର ଜିନିଷ ଧରେ । ଏଇ ହିସାବରୁ ଅନୁମାନ କରିହେବ, ଏ ତିମି ଦେହରେ କେତେ ପରିମାଣ ଚର୍ବି ଥାଏ ।

ସମୁଦ୍ର ବାଘ ଅପେକ୍ଷାକୃତ ସାନ ହେଲେ କଅଣ ହେବ, ତିମିଙ୍କ ଭିତରେ ସବୁଠାରୁ ବେଶି ହିଂସ୍ର ଓ ନିଷ୍ଠୁର । ଏହା କୋଡ଼ିଏ ହାତ ପର୍ଯ୍ୟନ୍ତ ଲମ୍ବା ହୁଏ । ଏହାର ବିଶେଷତ୍ୱ, ଏହା ପିଠି



( ସମୁଦ୍ରର ବାଘ )          ( କାଠଗଡ଼ମୁହାଁ ତିମି )

ଉପରେ ପଶୁଙ୍କ ଶିଙ୍ଗପରି ଗୋଟାଏ ମୁନଆଁ ଟାଣ ମାଂସ ଠିଆ ହୋଇ ରହିଥାଏ । ଏହି ତିମି କୌଣସି କାରଣ ଥାଉ ବା ନ ଥାଉ ମନୁଷ୍ୟ କି ଯେଉଁ ଜୀବଜନ୍ତୁଙ୍କୁ ଆଗରେ ଦେଖେ, ତାଙ୍କ ଉପରେ

Digitized by srujanika@gmail.com

ଆକ୍ରମଣ କରେ । କୌଣସି ପ୍ରକାର ବିପଦକୁ ତାହାର ଭୟ ନଥାଏ କି ଯୁଦ୍ଧରୁ କେବେ ପଛଘୁଞ୍ଚା ଦେବା ତାହାର ସ୍ୱଭାବ ନୁହେଁ । ତେବେ ଆଘାତ ପାଇଲେ ବି ସେ ତା ସ୍ଥାନରେ ରହି ପ୍ରତିଆକ୍ରମଣ ଚଳାଇଥାଏ । ଏହି କାରଣରୁ ଏହାର ନାମ ସମୁଦ୍ରର ବାଘ ଦିଆଯାଇଛି । ତିମିଯୋଗେ ସମୁଦ୍ରରେ ଯେତେ ମନୁଷ୍ୟ କି ପ୍ରାଣୀ ଜୀବନ ହରାଆନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ କେବଳ ଏହି ସମୁଦ୍ର ବାଘର କବଳରେ ପଡ଼ି ମରିଥାଆନ୍ତି ।

—୪—

ତିମି ଜଳଜନ୍ତୁ ହେଲେ ମଧ୍ୟ ପାଣି ଭିତରେ ବେଶି ସମୟ ରହିପାରେ ନାହିଁ । ଅବଶ୍ୟ ଏମାନେ ସମୁଦ୍ରର ଦୁଇଶ ମିଟରଠାରୁ ତିନିଶ ମିଟର ପର୍ଯ୍ୟନ୍ତ ଗଭୀର ପାଣିରେ ସାଧାରଣତଃ ବୁଡ଼ି ବୁଲୁଥାନ୍ତି । ମାତ୍ର ପ୍ରତି ଅଧଘଣ୍ଟାରେ ଅନ୍ତତଃ ଥରେ ପାଣି ଉପରକୁ ଉଠିଆସି ନିଃଶ୍ୱାସ ମାରନ୍ତି । ସେତେବେଳେ ତାଙ୍କ ମୁଣ୍ଡ ଉପରୁ ଯେଉଁ ପାଣିଝର ଖୁବ୍ ଉଚ୍ଚକୁ ଉଠି ଖେଳେଇ ହୋଇ ପଡ଼ଯାଏ, ତାହା ଦେଖିଲେ ଯେ କେହି ଲୋକ ଚମକି ଉଠିବ । ଏକାଠି ଶହ ଶହ ତିମି ଉପରେ ଭାସିଉଠି ଏହିପରି ପାଣି ଫୁଙ୍କାରି ଛାଡ଼ିଲେ, ସମୁଦ୍ରର ମାଇଲ ମାଇଲ ଧରି ଅଞ୍ଚଳରେ ପାଣିର ସ୍ତମ୍ଭମାନ ଉପରକୁ ଉଠିଯାଉଥିବାପରି ବୋଧହେବ । ନିଃଶ୍ୱାସ ନେଇ ସାରିଲା ପରେ ପୁଣି ତିମି ସମୁଦ୍ରର ଗଭୀର ତଳକୁ ବୁଡ଼ିଯାଏ । ଏହିପରି ସେ ଅନବରତ ତଳ ଉପର ହେଉଥାଏ ।

ସ୍ଥଳଭାଗରେ ବାସକରୁଥିବା ଜନ୍ତୁଙ୍କ ଫୁସ୍‌ଫୁସ୍ ପରି ତିମିର ଫୁସଫୁସ୍ । ସେ ପାଣି ଉପରକୁ ଉଠି ମୁକ୍ତବାୟୁରୁ ନିଃଶ୍ୱାସ ନିଏ । ତଥାପି ଶୁଖିଲାରେ ଆଣି ଛାଡ଼ିଦେଲେ ତିମି ବେଶି ସମୟ

Digitized by srujanika@gmail.com

ବଞ୍ଚି ରହିପାରେ ନାହିଁ । ମାଛ ଯେପରି ଶୁଖିଲାରେ ମରିଯାଆନ୍ତି, ସେ ସେହିପରି ମରିଯାଏ ।

ପଣ୍ଡିତମାନେ କହନ୍ତି, ତିମିର ଦେହର ଆକାର ଓ ଓଜନ ତୁଳନାରେ ତାର ଫୁସ୍‌ଫୁସ୍ କ୍ଷୁଦ୍ର ଓ ଅଳ୍ପ ଶକ୍ତିଶାଳୀ । ପାଣି ଭିତରେ ଭାରି ଦ୍ରବ୍ୟ ହାଲୁକା ଲାଗେ । ତିମି ପାଣିରେ ଭାସି ବୁଲୁଥିଲାବେଳେ ତା ଦେହର ଓଜନ ଓ ଚାପ କମ୍ ବୋଧ ହେଉଥିବାରୁ ଫୁସ୍‌ଫୁସ୍ ତାହା ସମ୍ଭାଳି ନିଏ । ମାତ୍ର ଶୁଖିଲାକୁ ଆସିଗଲେ ତା ଦେହର ଓଜନ ଅତି ବେଶି ହୋଇପଡ଼େ; ଫୁସ୍‌ଫୁସ୍ ତାହା ସହ୍ୟ କରିପାରେ ନାହିଁ; ତେଣୁ ହୃଦ୍‌ଯନ୍ତ୍ରଟି ଅଳ୍ପସମୟ ମଧ୍ୟରେ ବନ୍ଦ ହୋଇଯାଏ ଓ ତିମି ମରିଯାଏ ।



ତିମିର ପରମାୟୁ ବେଶି ନୁହେଁ । ଗୋଟିଏ ଗୋଟିଏ ତିମି ଶହେ ବର୍ଷରୁ ବେଶି ସମୟ ବଞ୍ଚନ୍ତି ବୋଲି ଆଗେ ଲୋକଙ୍କର ବିଶ୍ୱାସ ଥିଲା । ମାତ୍ର ଏବେ ପରୀକ୍ଷା କରି ଦେଖାଯାଇଛି ଯେ, ଏମାନଙ୍କ ପରମାୟୁ କୋଡ଼ିଏ ବର୍ଷରୁ ବେଶି ନୁହେ । କାଠମୁହାଁ ତିମିର ପରମାୟୁ ତ ଏହା ଅପେକ୍ଷା କମ୍ । କାଳକ୍ରମେ ସମୁଦ୍ରରୁ ତିମି ଶେଷ ହୋଇ ଆସିବାରୁ କେତେକ ଅଞ୍ଚଳରେ ତିମି ଶିକାର କରିବାରେ କଡ଼ା କଟକଣା ଜାରି ହୋଇଛି । କାରଣ, ଶିକାରୀମାନେ ଅତ୍ୟଧିକ ପରିମାଣରେ ତିମି ମାରି ପକାଉ ଥିବାରୁ ସେମାନଙ୍କ ବଂଶ ଲୋପ ପାଇଯିବାକୁ ବସିଲାଣି ।

ଲୋକେ କାହିଁକି ଏତେ ପରିମାଣରେ ତିମି ମାରନ୍ତି ?

ବର୍ତ୍ତମାନ ସମୟକୁ ବିଦ୍ୟୁତ୍ ଯୁଗ କୁହାଯାଉଅଛି । ବିଜୁଳି ଆଲୁଅ ସବୁ ଦେଶରେ ବ୍ୟାପିଗଲାଣି । ଏହା ପୂର୍ବରୁ

Digitized by srujanika@gmail.com

ପେଟ୍ରୋଲ ବା କେରୋସିନର ଯୁଗ ଥିଲା । ମାତ୍ର ଶହେ ବର୍ଷ ତଳେ ବିଦ୍ୟୁତ୍ ବା ପେଟ୍ରୋଲ କଥା ଲୋକଙ୍କୁ ଭଲରୂପେ ଜଣା ନ ଥିଲା । ସେତେବେଳେ ମହମବତି ଇଂଲଣ୍ଡ ଓ ଅନ୍ୟାନ୍ୟ ବହୁ ଦେଶରେ ଜଳ ଆଲୁଅ ଦେଉଥିଲା । ସେହି ମହମବତି ତିମି ଦେହର ଚର୍ବିରେ ହିଁ ତିଆରି ହୁଏ । ପ୍ରତ୍ୟହ କୋଟି କୋଟି ସଂଖ୍ୟାରେ ମହମବତି ବିକ୍ରି ହୁଏ । ସେଥିପାଇଁ ଇଂଲଣ୍ଡର ବହୁ ଦେଶର ଲୋକେ ତିମି ଶିକାର କରୁଥିଲେ । ତିମି ଦେହରୁ ଚର୍ବି କାଢ଼ି ସେଥିରୁ ତେଲ ବାହାର କରିବା ଓ ମହମବତି ତିଆରି କରିବା ପାଇଁ ହଜାର ହଜାର କାରଖାନା ଖୋଲିଛି । ସେହି କାରଖାନା ସବୁକୁ ତିମି ଯୋଗାଇ ଶିକାରୀମାନେ ଯଥେଷ୍ଟ ଲାଭବାନ ହୋଇଛନ୍ତି ଓ ଏବେ ବି ହେଉଛନ୍ତି ।

ଆଜିକାଲି ମହମବତିର ଚାହିଦା ପୂର୍ବ ଅପେକ୍ଷା କମି ଯାଉଛି ସତ; ମାତ୍ର ତିମି ଶିକାର କମି ନାହିଁ, ବରଂ ବଢ଼ିଛି । ତିମି ଦେହର ଚବିରେ ନାନାପ୍ରକାର ଖାଇବା ତେଲ, ସୁବାସିତ ତେଲ, ସାବୁନ, ମଲମ, ଔଷଧ ଇତ୍ୟାଦି ତିଆରି ହେଉଛି । ଏସବୁ ଜିନିଷର ଚାହିଦା ଆଜିକାଲି ପୃଥିବୀରେ ବହୁତ ବେଶି । ତେଣୁ ତିମି ମାରି କାରଖାନାକୁ ଯୋଗାଇବା ଲାଗି ଇଂଲଣ୍ଡ ଓ ଆମେରିକାରେ ଲୋକଙ୍କ ଆଗ୍ରହ ଅଧିକ ବଢ଼ୁଛି । ନିକଟରେ ବର୍ଷକ ଭିତରେ ଛି କେବଳ ଦକ୍ଷିଣମେରୁ ପାଖଆଖ ସମୁଦ୍ରରୁ ଏତେ ତିମି ମରାଯାଇ-ଥିଲେ ଯେ, ସେମାନଙ୍କ ଚର୍ବିରୁ ୨୧ ଲକ୍ଷ ୫୮ ହଜାର ୧୭୩ ପିମ୍ପା ତେଲ ସଂଗ୍ରହ କରାଯାଇଥିଲା । ସେହି ବର୍ଷ ବିଭିନ୍ନ ଶିକାରୀ ଦଳ ମିଶି ମୋଟ ୨୮ ହଜାର ୮୨୧ଟା ତିମି ମାରିଥିଲେ ।

ଏବେ ଉତ୍ତର ଆମେରିକା, ଜାପାନ ଓ ଚୀନ ଦେଶର ଲୋକେ ତିମି ମାଂସ ଅନ୍ୟତମ ଖାଦ୍ୟରୂପେ ବ୍ୟବହାର କରୁଛନ୍ତି ।

Digitized by srujanika@gmail.com

ବଡ଼ଲୋକଙ୍କ ଭୋଜିରେ ଏହା ବିଶେଷ ଭାବରେ ଲାଗୁଛି । ତେଣୁ ଏ ସବୁ ଦେଶର ବଡ଼ ବଡ଼ ସହରମାନଙ୍କରେ ଟିଣରେ ରଖା-ଯାଇଥିବା ତିମି ମାଂସ ବହୁ ପରିମାଣରେ ବିକି ହୋଇଥାଏ ।

—୭—

ତିମି ଶିକାର ପାଇଁ ସ୍ୱତନ୍ତ୍ର ଜାହାଜ ଓ ବଡ଼ ବଡ଼ ଡଙ୍ଗା ତିଆରି ହୋଇଛି । ଶିକାରୀମାନେ ଦଳ ବାନ୍ଧି ସେହି ଜାହାଜ ବା ଡଙ୍ଗାରେ ବସି ତିମି ରହୁଥିବା ଅଞ୍ଚଳକୁ ଯାଆନ୍ତି । ସେମାନଙ୍କ ପାଖରେ ଟାଣ ଓ ମୁନିଆ ବର୍ଚ୍ଛାମାନ ରହିଥାଏ । ସେ ବର୍ଚ୍ଛାରେ ଅତି ଲମ୍ବା ଲୁହା ଜଞ୍ଜିର ଲାଗିଥାଏ ।

ଶିକାରୀମାନେ ସମୁଦ୍ରରେ ବୁଲି ତିମି ଖୋଜନ୍ତି । ଦୂରରେ ତିମି ଭାସି ଉଠିବାର ଦେଖିଲେ ଛୋଟଛୋଟ ଡଙ୍ଗାରେ ବସି ତା ପାଖଆଡ଼େ ଖେଳାଇ ହୋଇଯାଆନ୍ତି । ତିମି ପୁଣି ଭାସି ଉଠିବା ସମୟକୁ ଅତି ସାବଧାନରେ ଅପେକ୍ଷା କରି ରହିଥାନ୍ତି । ତିମି ଆଉ ଥରେ ଭାସିଉଠିଲେ ପାଖରୁ ଅନ୍ତତଃ ଆଠ ଦଶଟା ବର୍ଚ୍ଛା ତା ଦେହକୁ ଲକ୍ଷ୍ୟ କରି ମରାଯାଏ । ଏକାବେଳକେ ଏତେ-ଗୁଡ଼ାଏ ତୀକ୍ଷ୍ଣ ବର୍ଚ୍ଛାର ଆଘାତ ପାଇ ସେ ସଙ୍ଗେସଙ୍ଗେ ସମୁଦ୍ରର ତଳଦେଶକୁ ବୁଡ଼ିଯାଏ ଓ ଦ୍ରୁତବେଗରେ ଏଣେ-ତେଣେ ଧାଇଁ ବୁଲେ । ସେତେବେଳେ ତା ଦେହର ରକ୍ତରେ ସମୁଦ୍ରର ସେ ଅଞ୍ଚଳଟା ଲାଲ ହୋଇଯାଏ ।

ତିମି ଦୂରକୁ ଦୂର ଯେତିକି ଯାଉଥାଏ, ଡଙ୍ଗାରେ ବସିଥିବା ଶିକାରୀମାନେ ବର୍ଚ୍ଛାରେ ଲାଗିଥିବା ଜଞ୍ଜିରକୁ ସେହି ପରିମାଣରେ ଖୋଲା କରି ଦେଉଥାଆନ୍ତି । ତା ନ କରି ସେମାନେ ଜଞ୍ଜିର

Digitized by srujanika@gmail.com

ଧର ବସି ରହିଲେ, ତିମି ଦୂରକୁ ଗୁଳିଯିବା ସଙ୍ଗେ ସଙ୍ଗେ ତାହା ଟାଣିହୋଇ ଯାଇ ସମୁଦ୍ରପାଣିରେ ଲେଉଟି ପଡ଼ିବ ଓ ଶିକାରୀମାନେ ତିମି ମାରିବେ କଅଣ, ନିଜେ ବୁଡ଼ି ମରିଯିବେ; ନଚେତ ଅସହ୍ୟ ଦୁଃଖକଷ୍ଟ ଭୋଗିବେ ।

ଆଠ ଦଶ ଗୋଟି ବର୍ଚ୍ଛା ମାଡ଼ରେ ଆଘାତ ପାଇଥିବା ଓ ବନ୍ଧନରେ ପଡ଼ିଥିବା ତିମି ବହୁ ସମୟ ଏଣେତେଣେ ବୁଲିଲାପରେ ତା ତେଜ କମିଯାଏ । ଏଣେ ବର୍ଚ୍ଛା ମାଡ଼, ତେଣେ ଦେହରୁ ଅପର୍ଯ୍ୟାପ୍ତ ପରିମାଣରେ ରକ୍ତ ବୁହିଯାଏ । ତିମି କ୍ରମେ ଦୁର୍ବଳ ହୋଇପଡ଼େ ଓ ଆଉ ବୁଲି ନ ପାରି ନିର୍ଜୀବ ହୋଇ ପଡ଼ିରହେ । ଶିକାରୀମାନେ ସେତେବେଳେ ଏକସମୟରେ ସବୁ ଜଞ୍ଜିର ଟାଣି ତିମିକୁ ଜାହାଜପାଖକୁ ନେଇ ଆସନ୍ତି । ଜାହାଜ ସହିତ ଲମ୍ବା ଦଉଡ଼ି ବା ଜଞ୍ଜିରରେ ତାକୁ ବାନ୍ଧି ଦିଆଯାଏ । ଜାହାଜ କୂଳକୁ ଗଲେ ତା ସଙ୍ଗେସଙ୍ଗେ ମଲା ତିମି ଭାସିଆସି ହୋଇ ଆସେ ।

ତିମି ଦେହରେ ଏତେ ବଳ ଯେ, ସେ ନିଜର ଲାଞ୍ଜ ପିଟି ବଡ଼ବଡ଼ ଜାହାଜ ଭାଙ୍ଗି ଚୂନା କରିଦେଇପାରିବ । କମ୍ପା ଜାହାଜତଳେ ରହି ପିଠିକୁ ଏପରି ଭାବରେ ଠେଲି ଦେବ ଯେ, ଶହ ଶହ ଯାତ୍ରୀ ସହ ଜାହାଜ ପାଣିରେ ଓଲଟି ପଡ଼ିବ । ଏହି ତିମି ଯୋଗେ ଅନେକ ଥର ବଡ଼ ବଡ଼ ଜାହାଜ ଭାଙ୍ଗିଛି ଓ ଶହ ଶହ ଲୋକ ପ୍ରାଣ ହରାଇଛନ୍ତି ।

ଆଜିକାଲି ତିମି ଶିକାର କରିବା ଲାଗି ସ୍ୱତନ୍ତ୍ର ଜାହାଜ ଓ ସ୍ୱତନ୍ତ୍ର ଅସ୍ତ୍ରଶସ୍ତ୍ର ତିଆରି ହେଲାଣି । ସେଇ ଜାହାଜରେ ତିମି ଦେହ କାଟିବା; ମାଂସ ଗନ୍ଧ ତେଲ ବାହାରକରିବା ଇତ୍ୟାଦି କାମ ପାଇଁ କାରଖାନା ରହିଛି । ତିମି ଉପରକୁ ବର୍ଚ୍ଛା ବା ଶର ମାରିବାପାଇଁ

Digitized by srujanika@gmail.com

ଗୋଟାଏ ପ୍ରକାର ବନ୍ଧୁକ ବ୍ୟବହୃତ ହେଉଛି । ବନ୍ଧୁକ ଫୁଟାଇଲେ ସେଥିରୁ ଶୂଳ ଅତି ଜୋରରେ ଯାଇ ଶିକାର ଦେହ ଫୁଟାଇଦଏ । ସେହିପରି ଏ ବନ୍ଧୁକ ଫୁଟାଇଲେ ସେଥିରୁ ଦୁଇ ମିଟର ଲମ୍ବର ଖର ବା ବର୍ଚ୍ଛା ଯାଇ ତିମି ଦେହରେ ଫୁଟିଯାଏ । ବର୍ଚ୍ଛାକୁ ଆଉ ହାତରେ ଫିଙ୍ଗିବାକୁ ପଡ଼େନାହିଁ । ଏହାଦ୍ୱାରା ତିମି ନିଶ୍ଚିତ ଆଘାତ ପାଏ ଏବଂ ଅଳ୍ପ ସମୟ ଓ ପରିଶ୍ରମରେ କାମ ହାସଲ ହୋଇଯାଏ ।

—୭—

୧୮୯୧ ମସିହା ଫେବୃଆରୀ ମାସ । ଇଂଲଣ୍ଡର ଗୋଟିଏ ତିମି ଶିକାରୀଦଳ ଜାହାଜରେ ବସି ତିମି ମାରିବାକୁ ଗଲେ । ବହୁ ଦୂର ଗଲା ପରେ ତିମି ରହୁଥିବା ଅଞ୍ଚଳରେ ଜାହାଜ ଲଙ୍ଗର କରାଗଲା । ଜାହାଜ ସହିତ ଦୁଇଟି ବୋଟବନ୍ଧା ହୋଇଥିଲା । ସେହି ବୋଟରେ ବସି ଦୁଇ ଦଳ ଶିକାରୀ ତିମି ଖୋଜିବାକୁ ବାହାରିଲେ ।

ପ୍ରାୟ ପାଞ୍ଚ କିଲୋମିଟର ଦୂରରେ ଗୋଟାଏ ବଡ଼ ତିମି ଉପରକୁ ଉଠିଥିବାର ଦେଖାଗଲା । ଡଙ୍ଗା ଦୁଇଟି ଖରବେଗରେ ସେଠାକୁ ଯାଇ ଦୁଇପଟରୁ ତିମିକୁ ଘେରିଗଲେ । ଗୋଟିଏ ଡଙ୍ଗାର ଶିକାରୀ ସଙ୍ଗେସଙ୍ଗେ ତା ଦେହକୁ ବର୍ଚ୍ଛା ଫିଙ୍ଗିଲେ । ବର୍ଚ୍ଛାଟି ତିମି ଦେହରେ ଫୁଟିଯିବା ମାତ୍ରକେ ଆଖି ପିଛୁଳାକେ ସମୁଦ୍ରରେ ମହା-ପ୍ରଳୟ ଘଟିଗଲା । ଅନ୍ୟ ଡଙ୍ଗାରୁ ବର୍ଚ୍ଛା ମାରିବାକୁ ଆଉ ଅବସର ମିଳିଲା ନାହିଁ ।

ତିମି ବର୍ଚ୍ଛାମାଡ଼ ଖାଇ ଅତି ଭୟଙ୍କର ହୋଇଉଠିଲା । ସେ ତାର ଦୀର୍ଘ ଲାଞ୍ଜ ଏତେ ଜୋରରେ ପିଟିଦେଲା ଯେ, ଅନ୍ୟ ଡଙ୍ଗାଟି ଏକାଥରକେ ଓଲଟିଗଲା । ତିମି ପାଣି ଭିତରେ ଅଦୃଶ୍ୟ

Digitized by srujanika@gmail.com

ହୋଇଗଲା । ସମୁଦ୍ରରେ ପ୍ରବଳ ବେଗରେ ଲହଡ଼ୀ ଖେଳିଗଲା । ଓଲଟି ପଡ଼ିଥିବା ଡଙ୍ଗାରେ ଯେଉଁ ଶିକାରୀ ତିନିଜଣ ଥିଲେ, ସେମାନେ କଏ କୁଆଡ଼େ ଗଲେ, ତାର ପତ୍ତା ମିଳିଲା ନାହିଁ ।

ଯେଉଁ ଡଙ୍ଗାରୁ ବର୍ଚ୍ଛାମରା ହୋଇଥିଲା, ସେ ଡଙ୍ଗାରେ ପାଞ୍ଚ ଜଣ ଶିକାରୀ ଥିଲେ । ସେମାନଙ୍କ ଆଖି ଆଗରେ ତିନି ଜଣ ସାଥି ନିମିଷକ ମଧ୍ୟରେ ଅତଳ ପାଣିରେ ସମାଧି ଲଭିଲେ । ଏହା ଦେଖି ସେମାନଙ୍କ ସାହସ ଓ ଉତ୍ସାହ କମିଗଲା, ମନ ଦବିଗଲା । ସାଥୀମାନଙ୍କ ଦୁର୍ଦ୍ଦଶାରେ ହୃଦୟ ବ୍ୟଥିତ ହୋଇଉଠିଲା ।

ମାତ୍ର ତାହା ଅଳ୍ପ ସମୟ ପାଇଁ । ଦୂରିଆଡ଼କୁ ଆଖି ବୁଲାଉ ବୁଲାଉ ଦେଖାଗଲା, ସେହି ତିମିଟି ପ୍ରାୟ ଦେଢ଼କିଲୋମିଟର ଦୂରରେ ପାଣି ଉପରେ ଭାସୁଛି । ବର୍ଚ୍ଛାର ତୀକ୍ଷ୍ଣ ମୁନରେ ତା ଦେହ ଯେ ଫୁଟିଯାଇଥିଲା, ସେଥିରୁ ରକ୍ତ ବାହାରି ସେଠାର ପାଣିକୁ ଲାଲ କରିଦେଇଛି ।

ଡଙ୍ଗାଟି ପୁଣି ସେହି ତିମି ଆଡ଼କୁ ଯାତ୍ରାକଲା । ଯାହାଲାଗି ତାଙ୍କର ତିନି ଜଣ ସାଥୀ ପ୍ରାଣ ଦେଇଛନ୍ତି, ତାକୁ ଜୀବନରେ ରଖି ଛାଡ଼ି ଦେଇଯିବା ଉଚିତ ନୁହେ । ପୁଣି ଗୋଟିଏ ତିମିରୁ ଯାହା ଲାଭ ହେବ, ତାହା କିଛି କମ ନୁହେ । ସେହି ଅର୍ଥ କେତେକ ପରି-ମାଣରେ ବନ୍ଧୁମାନଙ୍କ ବିୟୋଗ ଦୁଃଖ ଲାଘବ କରିଦେବ ।

ପ୍ରାୟ ଚବିଶ ଘଣ୍ଟା ଧସ୍ତାଧସ୍ତି ପରେ ସେମାନଙ୍କ ମନର କାମନା-ପୂରଣ ହେଲା, ତିମି ମଲା । ସେମାନେ ସେହି ବିରାଟ ମୃତ ଦେହକୁ ବହୁ କଷ୍ଟରେ ଜାହାଜ ପାଖକୁ ଆଣିଲେ ଏବଂ ସମସ୍ତେ ଲାଗିପଡ଼ି ତାକୁ ଜାହାଜ ଉପରକୁ ଉଠାଇଲେ । ସେଠାରେ ମାପିବାରୁ ଦେଖାଗଲା ଯେ, ଏହି ବିରାଟ ଜନ୍ତୁର ଦେହ ୨୦ ମିଟର ଲମ୍ବ ।

Digitized by srujanika@gmail.com

ଯେଉଁ ଲଞ୍ଚ ପିଟି ସେ ଏତେ ବଡ଼ ଉଙ୍ଗାଟାଏ କ୍ଷଣକ ମଧ୍ୟରେ ପାଣିରେ ବୁଡ଼ାଇଦେଲା, ସେ ଲଞ୍ଚର ଓସାର ପ୍ରାୟ ତିନମିଟର ।

ଶିକାରୀମାନେ କ୍ଳାନ୍ତ ହୋଇପଡ଼ିଥିଲେ । ତିମିଟାକୁ ଜାହାଜ ଉପରେ ସେ ଦିନକ ପାଇଁ ସେହିପରି ରଖିଦେବାର କଥା ହେଲା । ପରଦିନ ସକାଳୁ ତା ପେଟ ଚିରା ହେବ ଓ ଦେହରୁ ଚମ, ମାଂସ ଅଲଗା କରାଯିବ ।

ମାତ୍ର କେଜାଣି କାହିଁକି ଜାହାଜର କାପ୍ତେନ ଏଥିରେ ରାଜି ହେଲେ ନାହିଁ । ସେ ନିର୍ଦ୍ଦେଶ ଦେଲେ, ବର୍ତ୍ତମାନ ଏହାକୁ କାଟ ଓ ମାଂସରୁ ଚମଡ଼ା ଛଡ଼ାଇଦିଅ ।

ତାହା ହିଁ ହେଲା । ତିମିର ପେଟ ଚିରିବାକୁ ଦୁଇଜଣ ଲୋକ ଲାଗିଲେ, ବେକପାଖରୁ ଦୁଇ ତିନ ମିଟର ପର୍ଯ୍ୟନ୍ତ ଚିରା ହୋଇଗଲା ପରେ ସେମାନଙ୍କୁ ଜଣାଗଲା, ସେ ପେଟ ଭିତରେ କିଛି ଚହଲି ଯାଉଛି । ଗୋଳିଆ ପାଣି ଭିତରେ ଦରମରା ମାଛଟିଏ ଛଟପଟ ହେଲେ ଉପରକୁ ଯେପରି ଜଣାପଡ଼ିବ, ଏଠାରେ ସେହି-ପରି ବୋଧହେଉଛି । ସେମାନେ ଭାବିଲେ, ତିମି ମରିବା ପୂର୍ବରୁ ସାର୍କ ବା ସେଇଭଳି ଗୋଟାଏ ବଡ଼ ମାଛ ଗିଳିଥିଲା । ତାହା ହଜମ ହୋଇ ନାହିଁ—ବୋଧହୁଏ ବଞ୍ଚି ରହିଛି । ତାକୁ ଜୀଇଁଥିବା ଅବସ୍ଥାରେ କାଢ଼ିବାକୁ ହେବ । ତେଣୁ ସେମାନେ ଅତି ସାବଧାନରେ ତିମି ପେଟ ଚିରିବାକୁ ଲାଗିଲେ ।

ବହୁ ଅଂଶ ଚିରା ହୋଇଗଲା ପରେ ଯାହା ଦେଖାଗଲା, ସେଥିରେ ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ । ପେଟ ଭିତରେ ସାର୍କ ନାହିଁ କି କୌଣସି ଜନ୍ତୁ ନାହିଁ । ଶୋଇ ରହିଛି ସେମାନଙ୍କ ବନ୍ଧୁ ବଡ଼ ଶିକାରୀ ଜେମସ୍ ବାର୍ଟଲେ । ଦେହ ଅକ୍ଷତ; କିନ୍ତୁ ବିବର୍ଣ୍ଣ

Digitized by srujanika@gmail.com

ଜୀବନ ଅଛି; ମାତ୍ର ଚେତନା ନାହିଁ । ବଡ଼ ସାବଧାନରେ ଜେମସ୍ ବାଟଲେଙ୍କ ଅଚଳ ଦେହ ସେଠାରୁ ପଦାକୁ ଅଣାଗଲା ।

ସଙ୍ଗେ ସଙ୍ଗେ କାପ୍‌ଟେନ୍ ଓ ଜାହାଜର ଡାକ୍ତର ବଜଡ଼ ଆସିଲେ । ସେମାନେ ଜେମସ୍ ବାଟଲେଙ୍କ ଦେହରେ ଲାଗିଥିବା ଅପର୍ଯ୍ୟାପ୍ତ ଲାଳ ପୋଛି ପକାଇ ତାଙ୍କର ସେବା ଶୁଶ୍ରୂଷା କଲେ । ଅନବରତ ଚିକିତ୍ସା ଫଳରେ ଘଣ୍ଟାକ ପରେ ଜେମସ୍ ଚେତା ହୋଇ ଆଖି ଖୋଲିଲେ । ମାତ୍ର ତାଙ୍କର ପୂର୍ବ ଜ୍ଞାନ ଆସିବାକୁ ପୂର୍ବ ଗୋଟିଏ ସପ୍ତାହ ଲାଗିଥିଲା ।

ସମ୍ପୂର୍ଣ୍ଣ ସୁସ୍ଥ ହେଲାପରେ ଜେମସ୍‌ଙ୍କର ପୂର୍ବକଥାମାନ ମନେ ପଡ଼ିଗଲା । ସମୁଦ୍ରରେ ଡଙ୍ଗା ବୁଡ଼ିବାଠାରୁ ତିମିର ପେଟ ଭିତ୍ର ହେବାଯାଏ ତିରିଶଘଣ୍ଟା ସମୟ କଟିଥିଲା । ଏହି ତିରିଶଘଣ୍ଟା ସେ କିପରି ତିମି ପେଟରେ କଟାଇଥିଲେ, ତାହା ସେ ବର୍ଣ୍ଣନା କଲେ ।

ସେ କହିଲେ, "ପ୍ରଥମେ ତିମିଟିକୁ ଦେଖି ମୋର ଖୁବ୍ ଆନନ୍ଦ ହେଲା । ଅନ୍ୟ ଡଙ୍ଗାରୁ ଯେତେବେଳେ ତା ଉପରକୁ ବର୍ଚ୍ଛା ମରାଗଲା, ସେତେବେଳକୁ ମୁଁ ମୋ ବର୍ଚ୍ଛା ମାରିବାକୁ ପ୍ରସ୍ତୁତ ହେଉଥିଲି । ଏକ ସମୟରେ ଦୁଇଟିଯାକ ବର୍ଚ୍ଛା ମରାଯାଇଥିଲେ, ସେ କେତେକାଂଶରେ କାବୁ ହୋଇ ପଡ଼ିଥାନ୍ତା । ମାତ୍ର ମୁହୂର୍ତ୍ତକ ମଧ୍ୟରେ ତା ଲାଞ୍ଜ ମାଡ଼ରେ ଆମ ଡଙ୍ଗା ଲେଉଟିପଡ଼ିଲା । ମୁଁ ପାଣିର କେତେକ ତଳକୁ ଖସିଗଲି । ସଙ୍ଗେ ସଙ୍ଗେ ସାହସ ବାନ୍ଧି ପହଁରି ଉପରକୁ ଉଠିବାକୁ ଚେଷ୍ଟାକଲି; ମାତ୍ର ମୋତେ ଜଣାଗଲା, ମୁଁ ଯେପରି ଗୋଟାଏ ସ୍ରୋତ ମୁହଁରେ ପଡ଼ି ଆଗକୁ ଜୋରରେ ଭାସିଯାଉଛି । ଯେତେ ଚେଷ୍ଟାକଲେ ମଧ୍ୟ ସେ ସ୍ରୋତ କଟାଇ ଆସିପାରିଲି ନାହିଁ । ଅଳ୍ପ ସମୟ ପରେ ଗୋଟାଏ ଅନ୍ଧକାର

Digitized by srujanika@gmail.com

ଗୁମ୍ଫା ଭିତରେ ଯେପରି ମୁଁ ପଶିଯାଉଛି; ସେହିପରି ବୋଧହେଲା । ତା ପରେ ଘୋର ଅନ୍ଧାର । ସେ ସ୍ଥାନ ଯେ ସମୁଦ୍ରର ପାଣିତଳ ନୁହେ, ତାହା ମୁଁ ବୁଝିପାରୁଥିଲି । ମାତ୍ର କେଉଁ ସ୍ଥାନରେ ଆସି ମୁଁ ପହଞ୍ଚିଲି, ତାହା ଜାଣିପାରିଲି ନାହିଁ ।

"ତାହା ପରେ ଅସହ୍ୟ ଗରମ ବୋଧ କଲି । ସୂର୍ଯ୍ୟକିରଣର ଗରମ ସେ ନୁହେ । ଘୋର ଅନ୍ଧାର ଭିତରେ ବନ୍ଦ ହୋଇଥିବା ଗୋଟାଏ କ୍ଷୁଦ୍ର ଗୁମ୍ଫା ଭିତରେ ଲୋକ ରହି ତା ପାଖରେ ହୁହୁ ନିଆଁ ଜଳିଲେ ଯେଉଁ ଗରମ ବୋଧ ହେବ, ସେହିପରି ଗୁଳୁଗୁଳି ଗରମ ମୋତେ ଜଣାପଡ଼ିଲା । ହାତ ବଢ଼ାଇ ସେ ସ୍ଥାନ ପରୀକ୍ଷା କରିବାକୁ ମୁଁ ଚେଷ୍ଟାକଲି । ଚକ୍‌କଣ ଲାଳୁଆ ଜିନିଷ ହାତକୁ ଲାଗିଲା । ଦେହ ଝିମିଝିମି ହୋଇ ଆସିଲା, ତା ପରେ ଆଉ କିଛି ଜାଣିପାରିଲି ନାହିଁ—ବୋଧହୁଏ ଚେତା ବୁଡ଼ିଗଲା ।"

ଯେତେବେଳେ ଜ୍ଞାନ ହେଲା, ସେତେବେଳେ ମୁଁ ଜାଣିଲି ଯେ, ଜାହାଜର ତକିଆ ଉପରେ ମୁଁ ଶୋଇ ରହିଛି ।"

—୮—

ଜଣେ ତିମିଶିକାରୀ ତାଙ୍କ ପ୍ରଥମଥର ଶିକାରର ଅଭିଜ୍ଞତା ବର୍ଣ୍ଣନା କରି ଲେଖିଛନ୍ତି—

"ମୁଁ ପନ୍ଦରବର୍ଷ ବୟସରୁ ଜାହାଜରେ ଚାକର କରି ସମୁଦ୍ରକୁ ମୋର ଘରରୂପେ ବାଛି ନେଇଛି । ବର୍ଷକେ କେବେ କେମିତି ପନ୍ଦର କୋଡ଼ିଏ ଦିନ ଅବା ସ୍ଥଳରେ କଟେ; ତା ନ ହେଲେ ଆଉ ସବୁ ସମୟ ଯାକ ଦିନ ସେହି ଆଖି ପାଉ ନ ଥିବା ନୀଳପାଣି ଉପରେହିଁ କଟାଇବାକୁ ପଡ଼େ । ଦୁଇ ତିନି ବର୍ଷ ପରେ ସମୁଦ୍ର ସହିତ ସଂପ୍ତ

ଅବା ଗୋଟାଏ ସନସ୍ତ ସମ୍ପର୍କ ପ୍ରତିଷ୍ଠିତ ହୋଇଗଲା । ସ୍ଥଳଭାଗରେ ରହିଲେ ସମୁଦ୍ରକୁ ଯିବାପାଇଁ ମନ ହାଇଁପାଇଁ ହୁଏ ।

ବ୍ଯକର ପାଞ୍ଚ ବର୍ଷ ପରେ ତିମିଶିକାରୀ ଦଳରେ ପ୍ରବେଶ କଲି । ପ୍ରଥମଥର ଶିକାରକୁ ଯିବା ପୂର୍ବରୁ କାପ୍ଟେନ୍ ମୋତେ ନାନାପ୍ରକାର କଳକୌଶଳ ଶିଖାଇ ଦେଲେ; ସମ୍ଭାବ୍ୟ ଆପଦ ବିପଦରୁ କପର ଉଦ୍ଧାର ପାଇବାକୁ ହେବ, ସେ ସମ୍ପର୍କରେ କେତେକ କଥା ବୁଝାଇଲେ ।

ଜାନୁଆରୀ ମ ସର ଗୋଟିଏ ନିର୍ମଳ ପ୍ରଭାତରେ ଆମ ଜାହାଜ ତିମି ଶିକାର ପାଇଁ ଅନୁକୂଳ କଲା । ପାଞ୍ଚଦିନ ବେଶ୍ ଆନନ୍ଦ ଓ ଫୁର୍ତ୍ତିରେ କଟିଗଲା । ଷଷ୍ଠ ଦିନ ଆମେ ଆସି ଆମ ଲକ୍ଷ୍ୟସ୍ଥଳରେ ପହଞ୍ଚିଲୁ । ସେଦିନଟି ବିଶ୍ରାମ ନେବୁ ବୋଲି ସ୍ଥିର କଲୁ ।

ମାତ୍ର ବିଶ୍ରାମ ନେଇପାରିଲୁ ନାହିଁ । ଅଳ୍ପ ସମୟ ପରେ କେତେକ ଦୂରରେ ଗୋଟାଏ ତିମି ଭାସୁଥିବାର ଦେଖାଗଲା । ଜଣେ ସାଥୀ ପ୍ରଥମେ ଦେଖିଲେ ଓ ଆମ ସମସ୍ତଙ୍କୁ ତାହା ଦେଖାଇ ଦେଲେ । ମୁଁ ସେଆଡ଼କୁ ଚାହିଁରହିଲି; ମାତ୍ର ତିମି କାହିଁ ? ମୋତେ ଦେଖାଗଲା, ସମୁଦ୍ରର ପାଣି ଉପରେ ଗୋଟିଏ ପାଣିର ସ୍ତମ୍ଭ ଘନଘନ ଉପରକୁ ଖୁବ୍‌ଜୋରରେ ଉଠିଯାଉଛି ଓ ପରମୁହୂର୍ତ୍ତରେ ପାଣିରେ ଖେଳେଇ ହୋଇ ପଡ଼ିଯାଉଛି ।

ଯାହାହେଉ ଆମର ବିଶ୍ରାମ ନେବା କଥା ନ ହେଲା । ତିନିଖଣ୍ଡି ଡଙ୍ଗାରେ ତିନିଦଳ ଶିକାରୀ ବସି ତିମି ପହଁରୁଥିବା ସ୍ଥାନକୁ ଚାଲିଲୁ । କେତେକ ଦୂର ଗଲାପରେ ମୋ ଡଙ୍ଗାର ମୁଖ୍ୟ କହିଲେ, ଛୁଆଟିଏ; ବୋଧହୁଏ ସାତ ଆଠମାସ ମାତ୍ର ବୟସ ହେବ । ସେତେବେଳକୁ ତିମି ଓ ପରିସ୍ଥିତି ଆମକୁ ଦେଖାଯାଉଥାଏ । ସେ

Digitized by srujanika@gmail.com

ପାଣି ଭିତରେ କୁଆଡ଼େ ଅଦୃଶ୍ୟ ହୋଇଯାଉଥାଏ; ପୁଣି ପରମୁହୂର୍ତ୍ତରେ ଭାସିଉଠି ପାଣି ପିଚକାରି ଉପରକୁ ମାରୁଥାଏ । ମୁଁ ଯାହା ଆକାର ପ୍ରକାର ଦେଖିଲି, ସେଥିରେ ଭାବିଲି; ଏ ଛୁଆଟିଏ ? ଯଦି ସାତ ଆଠ ମାସର ଛୁଆ ଏ ହେବ, ତେବେ ସାତ ଆଠ ବର୍ଷର ତିମି କେତେ ବଡ଼ ନ ହେବ ?

ଆମେ ଧରିନେଲୁ ଯେ, ଛୁଆର ପାଖଆଖରେ ନିଶ୍ଚୟ ମା ଥିବ । ମାତ୍ର ଯେତେ ଆଖି ବୁଲାଇଲେ ମଧ୍ୟ ମାଆର ଛାୟାବର୍ତ୍ତି ପାଇଲୁ ନାହିଁ ।

ଅତି ନିକଟ ହୋଇଯିବାରୁ ତିନ ଡଙ୍ଗାରୁ ପାଞ୍ଚଗୋଟି ବର୍ଚ୍ଛା ଏକସମୟରେ ତିମିର ଦେହକୁ ଲକ୍ଷ୍ୟ କରି ମରାଗଲା । ସେଥିରୁ ଦୁଇଟି ବ୍ୟର୍ଥ ହୋଇଗଲା । ବାକି ତିନୋଟି ତିମି ଦେହ ଫୁଟାଇ-ଦେବା ସଙ୍ଗେସଙ୍ଗେ ସମୁଦ୍ର ଉପରେ ଯେପରି ପ୍ରଳୟ ଖେଳିଗଲା ।

ପାଣି ଏତେ ଜୋରରେ ଲହଡ଼ୀ ମାରିଲା ଯେ, ଆମ ଡଙ୍ଗା-ଗୁଡ଼ିକ କେବଳ ନାଚିବାକୁ ଲାଗିଲା । କେଉଁ ମୁହୂର୍ତ୍ତରେ ଯେ ପାଣି ପଶି ତାହା ବୁଡ଼ିଯିବ, ସେହି ଆଶଙ୍କା ମନରେ ଜାତହେଲା । କ୍ରମେ ଆମେ ଡଙ୍ଗା ଟିକିଏ ଦୂରକୁ ନେଇଯିବାକୁ ଚେଷ୍ଟାକଲୁ ଓ ସେହି ଅନୁସାରେ ବର୍ଚ୍ଛାର ଦଉଡ଼ା ଲମ୍ବାଇବାକୁ ଲାଗିଲୁ । ମାତ୍ର ତିମି ଯାଉଥିବା ଦିଗରେ ଡଙ୍ଗା ଏତେଜୋରରେ ଟାଣିହୋଇ ଯାଉଥାଏ ଯେ, ବିପରୀତ ଦିଗରେ ଯିବା ସମ୍ଭବ ହେଉ ନ ଥାଏ ।

ପ୍ରାୟ ପନ୍ଦର ସେକେଣ୍ଡ ମାତ୍ର ସମୟ ଯାଇଛି । ଆମମାନଙ୍କ ଚାରିପାଖରେ ଶହଶହ ସଂଖ୍ୟାରେ ଖୁବ୍ ବଡ଼ ବଡ଼ ତିମି ପାଣିରେ ଭାସିଉଠିଲେ । ଏତେ ସଂଖ୍ୟାରେ ଓ ଏପରି ବିରାଟ ଜନ୍ତୁ ଦେଖି ଆମମାନଙ୍କ ଆଖିରେ ପଲକ ପଡ଼ିଲା ନାହିଁ । କାପ୍‌ଟେନ ଆଗରୁ

Digitized by srujanika@gmail.com

କରୁଥିଲେ, ଡଙ୍ଗି ସାଧାରଣତଃ ବେଶି ସଂଖ୍ୟାରେ ଦଳ ବାନ୍ଧି ରହନ୍ତି ନାହିଁ । ତେବେ ଏଠାରେ ଏକାଠି ଏତେ ଡଙ୍ଗି ଆସିଲେ କୁଆଡ଼ୁ ?

ଅବଶ୍ୟ ପରେ ବୁଝିପାରିଲି, ପ୍ରଥମ ଦର୍ଶନରେ ମୋର ଚକ୍ଷୁଭ୍ରମ ଘଟିଥିଲା । ସେଠାରେ ଶହ ଶହ ସଂଖ୍ୟାରେ ଡଙ୍ଗି ନ ଥିଲେ; ଦଶ ପନ୍ଦରଟି ମାତ୍ର ଡଙ୍ଗି ଥିଲେ ।

ଏମାନଙ୍କ ବର୍ଚ୍ଛା ମାରି ରଗାଇବା ବିପଦ୍‌ଜନକ—ସେହି କଥା ଆମେ ଆଲୋଚନା କରୁଛୁ । ଦେଖିପାରିଲୁ ଯେ, ଆମକୁ ସାହାଯ୍ୟ କରିବା ଲାଗି ଆଉ ତିନୋଟି ଡଙ୍ଗା ଜାହାଜ ପାଖକୁ ଆସୁଛି । ଆମର ସାହସ ବଢ଼ିଗଲା । ଆମେ ପୁଣି ଯୁଦ୍ଧ କରିବାକୁ ସଜବାଜ ହୋଇଗଲୁ ।

ସେ ଡଙ୍ଗା ତିନୋଟି ଆମ ପାଖରେ ପହଞ୍ଚିବା ପୂର୍ବରୁ ତଳେ ଗୋଟାଏ ପ୍ରବଳ ଧକା ଖାଇ ମୁଁ ବସିଥିବା ଡଙ୍ଗାଟି ପାଣିଠାରୁ କେତେ ହାତ ଉପରକୁ ଉଠିଗଲା; ସଙ୍ଗେସଙ୍ଗେ ଓଲଟି ପାଣିରେ ପଡ଼ିଲା । ଆମେ ସେଥିରେ ଥିଲୁ ସାତଜଣ । କାହା ଭାଗ୍ୟରେ କଅଣ ଘଟିଲା, ତାହା ଜାଣିବାକୁ ଅବସର ମିଳିଲା ନାହିଁ ।

ଏ ଅବସ୍ଥାରେ ମୋ ଭଳି ଯେ କେହି ନୂଆଲୋକ ଚେତା ହରାଇ ବସିବା ଅସମ୍ଭବ ନୁହେ । ମାତ୍ର ସୌଭାଗ୍ୟର କଥା, ମୋତେ ସେ ଦଶା ଘାରି ନ ଥିଲା । ମୁଁ ପାଣି ଭିତରେ ଅଳ୍ପ ତଳକୁ ଯାଇ ପୁଣି ଉପରକୁ ଉଠି ଆସିଲି ଓ ଯଥାସାଧ୍ୟ ପହଁରିବାକୁ ଲାଗିଲି । ପାଖରେ ଗୋଟାଏ ମସ୍ତବଡ଼ ଡଙ୍ଗା ଓଲଟି ପଡିଥିବାର ଦେଖି ତା

Digitized by srujanika@gmail.com

ପାଖକୁ ପହଁରିଗଲି ଓ ତା ଉପରେ ଚଢ଼ି ବସିଲି । କିନ୍ତୁ ସେ ଯେ ଗୋଟିଏ ଜୀବନ୍ତ ଜନ୍ତୁ, ତାହା ବୁଝିବାକୁ ବେଶି ଡେରି ଲାଗି ନ ଥିଲା । ତାହା ଗୋଟିଏ ତିମି । ତାହା ଉପରେ ମାଛିଟିଏ ବସିଲା ପରି ମୁଁ ଯେ ତା ପିଠିରେ ଆରୋହୀ ହୋଇଛି, ସେ ତାହା ଜାଣିପାରିଲା କି ନାହିଁ ମୁଁ ବୁଝିପାରିଲି ନାହିଁ । ସଙ୍ଗେସଙ୍ଗେ ସେ ପାଣିରେ ବୁଡ଼ିଗଲା ଓ ମୁଁ ବି ତା ସଙ୍ଗରେ ବୁଡ଼ିଲି । ସମୁଦ୍ର ଭିତରେ ସେ ଖସି ଉଠିବାରୁ ମୁଁ ଉପରକୁ ଉଠି ନିଃଶ୍ୱାସ ନେଲି । ଏହାପରେ ଆଉ ଦୁଇ ଥର ଡ଼ୁବନ ହେବାପରେ ଅବସ୍ଥା କଅଣ ହେଲା ମୁଁ ଆଜି ଜାଣେ ନାହିଁ ।

ପରେ ମୋର ଜାହାଜର ଡାକ୍ତରଖାନାରେ ଚେତନା ଆସିଲା । ସାଥିମାନଙ୍କଠାରୁ ଶୁଣିଲି, ଆମେ ସେହି ଯୁଦ୍ଧରେ ଏକାବେଳକେ ପାଞ୍ଚଗୋଟି ତିମିଙ୍କୁ ବନ୍ଦୀ କରି ଆଣିଛୁ । ତାହାର ମୂଲ୍ୟ ସ୍ୱରୂପ ଆମର ଦୁଇଜଣ ସାଥୀଙ୍କୁ ଚିରଦିନ ପାଇଁ ହରାଇଛୁ ଓ ପାଞ୍ଚଜଣଙ୍କ ଅବସ୍ଥା ଏପରି ହୋଇଛି ଯେ, ସେମାନେ ତାଙ୍କ ଜୀବନକାଳ ଭିତରେ ଆଉ ତିମି ଶିକାର କରିବାକୁ ସମର୍ଥ ହୋଇ ପାରିବେ ନାହିଁ । ଦୁଇଜଣଙ୍କ ଅଣ୍ଟା ଭାଙ୍ଗି ଯାଇଛି । ଜଣଙ୍କର ଗୋଟିଏ ଗୋଡ଼ ସମ୍ପୂର୍ଣ୍ଣ ଉଡ଼ିଯାଇଛି । ବାକି ଦୁଇଜଣ ସେହିପରି ଗୁରୁତର ଆଘାତ ପାଇଛନ୍ତି ।

ଯେଉଁ ଦୁଇଜଣ ହତଭାଗ୍ୟ ତାଙ୍କ ଜୀବନ ଦେଇ ଆମକୁ ପାଞ୍ଚଗୋଟି ତିମିର ଅଧିକାରୀ କରିଦେଇଗଲେ, ତାଙ୍କ ଲାଗି ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବା ବ୍ୟତୀତ ଆମର ଆଉ କଅଣ ବା କର୍ତ୍ତବ୍ୟ ଅଛି ?

Digitized by srujanika@gmail.com

—୯—

କେତେ ବର୍ଷ ତଳେ ସ୍କଟଲଣ୍ଡର ଉପକୂଳରେ ଗୋଟିଏ ଭମି ଦେଖାଗଲା । ସେ ଅଞ୍ଚଳ ଭମିଙ୍କ ବାସସ୍ଥାନ ନୁହେ । ତଥାପି ସେ ଗୋଟିକ ଯେ କେତେ ଦୂରରୁ ଆସି ସେଠାରେ ଆଶ୍ରୟ ନେଇଥିଲା, ତାହା ବୁଝି ଯାଉ ନ ଥାଏ ।

ଭମିଟି ଅବଶ୍ୟ ବଡ଼ ନୁହେ, ଦେହର ଲମ୍ବା କୋଡ଼ିଏ, ପଚିଶ ହାତ ମଧ୍ୟରେ ହେବ ।

ଆଶ୍ଚର୍ଯ୍ୟର କଥା, ସେହି ବାଟରେ ଯେତେବେଳେ ଜାହାଜ ଯାଏ, ଭମିଟି ସେତେବେଳେ ପାଣିରେ ଭସିଉଠେ ଓ ଜାହାଜ ଧାର ପାଖରେ ଘୂରବୁଲେ । ଅନେକ ସମୟରେ ଜାହାଜ ଆଗେ ଆଗେ ବାଟ କଢ଼ାଇ ନେଲାପରି ପହଁରୁଥାଏ ।

ପୋଷାକୁକୁର ତା ମୁନିବ ସଙ୍ଗରେ ଆଗେଆଗେ ଗଲା-ବେଳେ ଯେପରି ଥରେଥରେ ପଛକୁ ଚାହିଁଦେଇ ଆନନ୍ଦ ପ୍ରକାଶ କରେ ଓ ଆଗକୁ ଦଉଡ଼ି ଯାଏ, ଭମିଟି ସେହିପରି ଥରେ ଥରେ ଜାହାଜ ଆଡ଼କୁ ବୁଲିପଡ଼ି ଚାହେଁ; ଜାହାଜ ଗତିର ଲକ୍ଷ୍ୟ ଅନୁସରଣ କରି ପୁଣି କିଛି ବାଟ ଆଗକୁ ପହଁରିଯାଏ । ତା ଚାହିଁବା ଭଙ୍ଗୀ ଓ ଲାଞ୍ଜ ପିଟାରୁ ଅନୁମାନ ହୁଏ, ସେ ଯେପରି ଖୁବ୍ ଆନନ୍ଦ ପ୍ରକାଶ କରୁଛି । ଜାହାଜ ସହିତ ଏହିପରି ସେ ଦଶ ବାର ମାଇଲ ପର୍ଯ୍ୟନ୍ତ ଯାଏ, ତାହା ପରେ ପାଣି ଭିତରେ ଅଦୃଶ୍ୟ ହୋଇଯାଏ ।

ପ୍ରତ୍ୟେକ ଜାହାଜ ଗଲାବେଳେ ଜାହାଜର ଯାତ୍ରୀ ତାର ଏ ଭଙ୍ଗୀ ଦେଖନ୍ତି । ଅନେକେ ପାଖରେ ଥିବା ରୁଟି, ବିସ୍କୁଟ ପ୍ରଭୃତି ଖାଦ୍ୟଦ୍ରବ୍ୟ ତା ପାଖକୁ ପକାଇଦିଅନ୍ତି । ସେଗୁଡ଼ିକ ତାର ଖାଦ୍ୟ ନୁହେ । ସେ ତାକୁ ଚାହେଁ ନାହିଁ; ଜାହାଜ ଓ ଜାହାଜର ଯାତ୍ରୀଙ୍କୁ

Digitized by srujanika@gmail.com

ଘୂର୍ଣ୍ଣି ବୁଲୁଥାଏ । ସତେ ଅବା ଯାତ୍ରୀଙ୍କ ସବୁଚ ତାର କେଉଁ ଜନ୍ତୁରୁ ବନ୍ଧୁତା ଲଗି ରହିଛି ।

ଏହିପରି ପ୍ରାୟ ବର୍ଷେ ଯାଏ ଲାଗିଥିଲା । ଥରେ ଗୋଟିଏ ଜାହାଜର ଜଣେ ଯାତ୍ରୀ ତାକୁ ଲକ୍ଷ୍ୟ କରି ବନ୍ଧୁକ ମାରିଲେ । ଗୁଳି ତା ଦେହରେ ବାଜିଲା; ମାତ୍ର ତାର କେତେଦୂର କଅଣ କ୍ଷତ ହେଲା, ତାହା ଜଣା ପଡ଼ିଲା ନାହିଁ । ସେ ଯେ ପାଣିରେ ବୁଡ଼ିଗଲା, ଆଉ ତିନି ମାସ ପର୍ଯ୍ୟନ୍ତ ତା ମୁହଁ କେହି ଦେଖି ନାହାନ୍ତି,

ତିନି ମାସ ପରେ ପୁଣି ସେ ଦେଖାଗଲା । ମାତ୍ର ସେତେବେଳେ ସେ ଆଉ ଜାହାଜ ପାଖକୁ ଆସେ ନାହିଁ; ପ୍ରାୟ ଅଧମାଇଲ ଦୂରରେ ରହି ଜାହାଜ ଚାରିପାଖ ଘୂରୁଥାଏ ଓ ଆଗେ ଆଗେ ବାଟ କଢ଼ାଇ ନେଉଥାଏ । ବହୁତ ଦିନଯାଏ ଜାହାଜର ଯାତ୍ରୀମାନଙ୍କ ତାକୁ ଏଇପରି ଅବସ୍ଥାରେ ଦେଖିଥିଲେ ।

ତାକୁ ଦେଖି ଦେଖି ଜାହାଜ ସବୁର କେତେକ କର୍ମଚାରୀଙ୍କ ମନରେ ବିଶ୍ୱାସ ଜନ୍ମିଥିଲା ଯେ, ତାହା ତିମି ନୁହେଁ; କୌଣସି ଦେବତା ତିମି ରୂପରେ ଲୋକଙ୍କୁ ସାହାଯ୍ୟ କରିବାପାଇଁ ସେଠାରେ ଘୂରି ବୁଲୁଛି । ତିମିଟିର ଏ ଆଚରଣର ତାତ୍ପର୍ଯ୍ୟ ଏପର୍ଯ୍ୟନ୍ତ ମଧ୍ୟ କୌଣସି ଜୀବଜନ୍ତୁ ବିଶେଷଜ୍ଞ ବୁଝିପାରି ନାହାନ୍ତି ।

—୧୦—

ଥରେ ଦଳେ ଶିକାରୀ ଗୋଟିଏ ବଡ଼ କାଠମୁହାଁ ତିମି ମାରିଥିଲେ । ସେ ତାକୁ ଶୁଖିଲାକୁ ଆଣି ପେଟ ଚିରିବାରୁ ଦେଖାଗଲା ଯେ, ତା ପାକସ୍ଥଳୀ ଭିତରେ ଜଣେ ବଳିଷ୍ଠ ଲୋକ ଓ ଦୁଇଟି ବଡ଼ ସାର୍କ ମାଛ ଅଣ୍ଟିଭଙ୍ଗା ମନରେ ଶୋଇଅଛନ୍ତି । ଅବଶ୍ୟ ତାହା ତାଙ୍କର

Digitized by srujanika@gmail.com

ଶିରନଦ୍ୱା । ତିମିଟି ମରିବାର ଅଳ୍ପ ସମୟ ପୂର୍ବରୁ ଏମାନଙ୍କୁ ଗିଳିଥିଲା । ତାହା ହଜମ ନ ହେଉଣୁ ନିଜେ ଜୀବନ ହରାଇଛି ।

ତିମିଟିର ମୃତ ଦେହ ପରୀକ୍ଷା କରି ଦେଖାଗଲା, ତାହାର ଦେହରେ କୌଣସି ସ୍ଥାନରେ ହେଲେ ଆଘାତ ଲାଗି ନାହିଁ । ମନୁଷ୍ୟଟିକୁ ବଞ୍ଚାଇବା ପାଇଁ ବହୁତ ଉଦ୍ୟମ ହୋଇଥିଲା; ମାତ୍ର ସବୁ ବିଫଳ ହେଲା ।

ଜଣେ ତିମିଶିକାରୀ ତାଙ୍କର ପ୍ରଥମ ଥର ତିମି ଶିକାରର ଅଭିଜ୍ଞତା ବର୍ଣ୍ଣନା କରି ଲେଖିଛନ୍ତି—ପ୍ରାୟ ତିନି ସପ୍ତାହ ସମୁଦ୍ର ଭିତରେ କଟିଲା ପରେ ଆମ ଜାହାଜ ଗୋଟିଏ ଦ୍ୱୀପ ପାଖରେ ପହଞ୍ଚିଲା । ସେଠାରେ ବଡ଼ ଜାହାଜଟିକୁ ଲଙ୍ଗର କରାଗଲା । ତାହା ହେଉଛି ତିମି କାରଖାନା । ଦ୍ୱୀପରେ ତମ୍ବୁ ପକାଇ କାରଖାନା ଖୋଲାଗଲା । ବଡ଼ ବଡ଼ କ୍ରେନ୍, କରତକଳ, ବଡ଼ ଚୁଲି ଠିକ୍ ମୁତାବକ ବସାଗଲା ।

ସେ ଜାହାଜ ସହିତ ଆଠଗୋଟି ସାନ ଜାହାଜ ରହିଥାଏ । ବିଶିଷ୍ଟ ଦଳ ସେଇ ଜାହାଜଗୁଡ଼ିକ ତିମି ଅନୁସନ୍ଧାନରେ ବାହାରିଲେ । ଖୋଦ୍ କାପ୍ଟେନ୍ ଯେଉଁ ଜାହାଜରେ ଥିଲେ, ମୋର ସ୍ଥାନ ସେଇ ଜାହାଜରେ ହେଲା । କାପ୍ଟେନ୍ ଦକ୍ଷ ତିମି-ଶିକାରୀ । ତାଙ୍କ ଜୀବନରୁ ଅର୍ଦ୍ଧେକ ସମୟ ସେ ତିମି ସହିତ ଯୁଦ୍ଧ କରି କଟାଇ ଦେଲେଣି ।

ଦୁଇ ଦିନ ଓ ଦୁଇ ରାତି ସେହି ଜାହାଜରେ ବସି ପାଣି ଉପରେ କେବଳ ବୁଲିବାରେ ହିଁ କଟିଗଲା । ତୃତୀୟ ଦିନ ସକାଳୁ ହୁରିଆଡ଼ ପର୍ଚ୍ଚା ହୋଇଯିବା ସଙ୍ଗେ ସଙ୍ଗେ ଆମର ଭାଗ୍ୟ ଖୋଲି-

Digitized by srujanika@gmail.com

ଗଲା । ମାସ୍ତୁଲ ଉପରେ ଥିବା ଲୋକଟି ପାଟିକରି ଉଠିଲେ, "ଦୁଇଟା ତିମି ।" ସେ ହାତ ବଢ଼ାଇ ଯେଉଁ ଆଡ଼କୁ ଦେଖାଇ ଦେଲେ, ଜାହାଜ ସେହି ଆଡ଼ରେ ଗତିକଲା ।

କିଛି ବାଟ ଗଲାପରେ ମୁଁ ଦେଖିଲି, ଦୁଇଟା କଳା କଳା ଜିନିଷ କଅଁଳ ପାଣି ଉପରେ ଭାସୁଛି । ଯେ କେହି ନୂଆ ସମୁଦ୍ର-ଯାତ୍ରୀ ଭାବିବ, ଦୁଇଟି ଛୋଟ ଦ୍ୱୀପ । ମାତ୍ର ମୁଁ ଆଗରୁ ବହୁବାର ସମୁଦ୍ରରେ ଯାତାୟାତ କରିଛି—ମୋର ସେ ଭ୍ରମ ହେବାର ନୁହେଁ । ତାହା ଦୁଇଟା ତିମିର ମୁଣ୍ଡ ।

ସେଇ ତିମି ଦୁଇଟି ମିନିଟିଏ ଯାଏ ଉପରକୁ ମୁଣ୍ଡ ଟେକି ଭାସି ବୁଲନ୍ତି । ଯେଉଁ ପାଣି ପିଚ୍‌କାରୀ ମାରନ୍ତି, ତାହା ତିନି ଚାରି ମିଟର ପର୍ଯ୍ୟନ୍ତ ଉଚ୍ଚରେ ଉଠି ଖେଳେଇ ହୋଇ ପଡ଼ିଯାଏ । ସେ ପାଣିର କେତେକ ଅଂଶ ନେଳିଆ ହୋଇଥିବାରୁ ତାହା ସମୁଦ୍ର ପାଣିରେ ପଡ଼ି ଚକ୍ ଚକ୍ ଦେଖାଯାଏ । ତାହାପରେ ଦ୍ରୁତବେଗରେ ସେ ଦୁହେଁ କିଛିଦୂର ବୁଲିଯାଇ ପାଣି ତଳେ ବୁଡ଼ିଯାଆନ୍ତି; ପୁଣି ଅଶୀ ନବେ ମିଟର ଦୂରରେ ଭାସିଉଠନ୍ତି ।

ତାଙ୍କ ପଛେ ପଛେ ଆମ ଜାହାଜ ଦଉଡ଼ୁ ଥାଏ । ଯେପରିକି ତିମି ଓ ଜାହାଜ ମଧ୍ୟରେ ଦଉଡ଼ିବା ପ୍ରତିଯୋଗିତା ଲାଗିଯାଇଛି । କ୍ରମେ ଦୂରତ୍ୱ କମି ତିରିଶ ମିଟର ଭିତରେ ରହିଲା । କାପ୍‌ଟେନ୍ ହାର୍ପୁନ୍ ( ବର୍ଛା ଫୁଟିବା ବନ୍ଧୁକ ) ମୁହଁକୁ ଘୂରାଇ ଲକ୍ଷ୍ୟ ଠିକ୍ କରୁଥାନ୍ତି ।

ଏହିପରି ତିମି ଦୁଇଟି ପଛରେ ଗୋଡ଼ାଇବାରେ ଦୁଇଘଣ୍ଟା ସମୟ କଟିଗଲା । ଶେଷକୁ ଦୂରତ୍ୱ ରହିଲା ଦଶ ମିଟର ମଧ୍ୟରେ ।

Digitized by srujanika@gmail.com

ପାଣି ଉପରେ ତିମି ଭାସି ଉଠିବା ସଙ୍ଗେସଙ୍ଗେ କାପ୍‌ଟେନ୍ ହାର୍ପୁନ୍‌ର ଘୋଡ଼ା ଟିପିଦେଲେ । ବନ୍ଧୁକ ମୁହଁରୁ ପ୍ରଚୁର ଧୂଆଁ ବାହାରିଗଲା ଏବଂ ତୀକ୍ଷ୍ଣ ବର୍ଚ୍ଛା ଅତି ଜୋରରେ ଯାଇ ଗୋଟାଏ ତିମି ମୁଣ୍ଡରେ ବାଜିଲା; କିନ୍ତୁ ଫୁଟିଗଲା ନାହିଁ । ଟାଣ ପଥରରେ କୁରାଢ଼ି ମାରିଲେ, ତାହା ଯେପରି ଛିଟିକି ଆସେ, ବର୍ଚ୍ଛା ସେହିପରି ଛିଟିକି ଗଲା । ତିମିଟା ପାଣି ଭିତରେ ବୁଡ଼ିଗଲା ।

ଦଉଡ଼ି ଟାଣି ବର୍ଚ୍ଛାଟାକୁ ଜାହାଜ ଉପରକୁ ଅଣାଗଲା । ଦେଖାଗଲା ଯେ, ବର୍ଚ୍ଛାର ମୁନ ଓଲଟି ଯାଇଛି । ତାକୁ କାଢ଼ି ଦଉଡ଼ାରେ ଆଉ ଗୋଟାଏ ବର୍ଚ୍ଛା ବାନ୍ଧି ଦିଆଗଲା ।

ତାହାର ଘଣ୍ଟାକ ପରେ ପ୍ରାୟ ପନ୍ଦରମିଟର ଦୂରରେ ଗୋଟାଏ ତିମି ଭାସି ଉଠିଲା । କାପ୍‌ଟେନ୍ ହାର୍ପୁନ୍ ଘୋଡ଼ା ଟିପିଲେ । ବର୍ଚ୍ଛା ଯାଇ ତିମି ମୁଣ୍ଡରେ ଯୋର୍‌ରେ ବାଜି ଭିତରକୁ ପଶିଗଲା । କାପ୍‌ଟେନ ହାକିଦେଲେ, ସାବଧାନ ! ସାରଙ୍ଗ ଉତ୍ତର ଦେଲେ ଖବରଦାର୍ । ତା ଅର୍ଥ ସମ୍ମୁଖରେ ଭୟଙ୍କର ବିପଦ, ସମସ୍ତେ ସାବଧାନ ରହ ।

ବର୍ଚ୍ଛାରେ ବନ୍ଧା ହୋଇଥିବା ଦଉଡ଼ାରେ ପ୍ରତି ଷୋହଳମିଟର ଅନ୍ତରରେ ନାଲି ଦାଗ ଦିଆ ଯାଇଥାଏ । ସେହି ଦଉଡ଼ା ତିନିଶହ ମିଟର ଲମ୍ବା ଥାଏ । ଅତି ଜୋରରେ ସେ ଦଉଡ଼ା ଟାଣିହୋଇ ପାଣି ଭିତରକୁ ଚାଲିଯାଉଥାଏ । ତା ସଙ୍ଗେସଙ୍ଗେ ଜାହାଜ ବି ଚାଲିଯାଉଥାଏ । ଦଉଡ଼ା ଶେଷ ହେଲା ବେଳକୁ ଜାହାଜରେ ଏତେ ଜୋରରେ ଧକ୍‌କା ଲାଗିଲା ଯେ, ଆମେ ସମସ୍ତେ ଟାଳ୍ ସମ୍ଭାଳି ନ ପାରି ପଡ଼ିଗଲୁ । ରକ୍ଷା ହୋଇଛି, ପାଣି ଭିତରେ କେହି ପଡ଼ିନାହୁଁ ।

Digitized by srujanika@gmail.com

କ୍ରମେ ଦଉଡ଼ାଟଣାର ଗତି ଟିକଏ ମନ୍ଥର ଜଣାଗଲା । କାପ୍ତେନଙ୍କ ନିର୍ଦ୍ଦେଶକ୍ରମେ ଆମେ ସମସ୍ତେ ଲାଗିପଡ଼ି ଚକ ଘୁରାଇଲୁ । ତା ଫଳରେ ବର୍ଚ୍ଛାର ଦଉଡ଼ା ପାଣିରୁ ଟାଣିହୋଇ ଆସି ଗୁଡ଼ାଇ ହେବାକୁ ଲାଗିଲା ।

ତିମିର ପ୍ରକାଣ୍ଡ ଦେହ ପାଣି ଉପରେ ଭାସିଉଠିଲା । ଏ ପର୍ଯ୍ୟନ୍ତ ଆକାଶରେ କୌଣସି ପକ୍ଷୀର ଚିହ୍ନ ନ ଥିଲା । ହଠାତ୍ କୁଆଡ଼ୁ ଶହ ଶହ କଳାରଙ୍ଗର ପକ୍ଷୀସବୁ ଆସି ଆକାଶରେ ଉଡ଼ି ବୁଲିଲେ । କୌଣସିଠାରେ ମୃତଦେହ ପଡ଼ିଲେ ଯେପରି ଶୂନ୍ୟରେ ଶାଗୁଣା ଚକି ଦେଇ ଉଡ଼ନ୍ତି, ସେହିପରି ଏ ପକ୍ଷୀଗୁଡ଼ିକ ଉଡ଼ି ଆକାଶକୁ ଛାଇଦେଲେ ।

ସମୁଦ୍ରର ପାଣି ତିମି ରକ୍ତରେ ଏକାବେଳକେ ଲାଲ ହୋଇଗଲା । ସେ ସମ୍ପୂର୍ଣ୍ଣରୂପେ ମରି ନ ଥାଏ, ଛଟପଟ ମାଝ ହେଉଥାଏ । ଯେତେବେଳେ ଆମ ଜାହାଜ ବୁଡ଼େ ନ ବୁଡ଼େ । ଏହିପରି ଘଣ୍ଟାଏ ପର୍ଯ୍ୟନ୍ତ ଧସ୍ତାଧସ୍ତି ଚାଲିଲା । ତାହାପରେ ସବୁ ସ୍ଥିର ଅଚଳ । ପ୍ରକାଣ୍ଡକାୟ ତିମିର ଶରୀର ପୂରାପୂରି ପାଣି ଉପରେ ଭାସିବାକୁ ଲାଗିଲା । ସେତେବେଳକୁ ତା ଦେହରୁ ପ୍ରାଣବାୟୁ ଉଡ଼ି ଯାଇଥାଏ ।

ତିନିଗୋଟି ଦଉଡ଼ିନେଇ ତାହାର ଲାଞ୍ଜରେ ବାନ୍ଧି ଦିଆଗଲା । ବର୍ଚ୍ଛାର ଦଉଡ଼ା ମଧ୍ୟ ଜାହାଜର ଉପରମୁଣ୍ଡରେ ବନ୍ଧା ଯାଇଥାଏ । ତାହା ପରେ ଦେହର ଚମ କଣାକରି ପମ୍ପ ସାହାଯ୍ୟରେ ଯୋଡ଼ାଏ ପବନ ତା ଭିତରେ ପୂରାଇ ଦିଆଗଲା । ସେହି ବିଶାଳଦେହ ପୁଣି ଫୁଲି ଉଠିଲା ଓ ହାଲୁକା ହେବାରୁ ପାଣି ଉପରେ ଫୁଟବଲ ପରି

Digitized by srujanika@gmail.com

ସ୍ରୋତଧାରେ ଭସିଲା । ଜାହାଜ ଆସ୍ତେଆସ୍ତେ ଦ୍ୱୀପ ଅଭିମୁଖରେ ଯାତ୍ରା କଲା ।

ଦ୍ୱୀପରେ ପହଞ୍ଚିଲା ବେଳକୁ ରାତ୍ରି ହୋଇଯାଇଥିଲା । ମାତ୍ର ସେଠାରେ ଆମର କାରଖାନା ଖୋଲାଯାଇଥିବାରୁ ଇଲେକ୍‌ଟ୍ରିକ ଆଲୁଅରେ ଚାରିଆଡ଼ ଦିନ ଭଳି ଦେଖାଯାଉଥାଏ ।

ଆମ ଜାହାଜ କୂଳରେ ଅଟକିବା ସଙ୍ଗେସଙ୍ଗେ ହେନ ସାହାଯ୍ୟରେ ତିମିଟାକୁ ଦ୍ୱୀପ ଉପରକୁ ନେଇଗଲେ । ମୋଟାହୋସ୍ ପାଇପ ଲଗାଇ ତାର ସର୍ବାଙ୍ଗ ପାଣିରେ ଭଲରୂପେ ଧୋଇ ଦିଆଗଲା । ଚମଡ଼ାରେ ଆଠ ଦଶ ଜାଗା କଣା କରି ଯୋରରେ ପମ୍ପ କରାଗଲା । ବହୁତ ସମୟ ଏଭଳି ପମ୍ପ କରାଯିବାରୁ ଚମଡ଼ାଟି ଦେହରୁ ସ୍ରୋତଧାରେ ଅଲଗା ହୋଇଗଲା । ଚମଡ଼ାକୁ ଯତ୍ନରେ ରଖିଦେଇ ଚର୍ବିଯାକ ପିମ୍ପାରେ ପୂରାଇଲେ । ଚର୍ବିତଳେ ଥିବା ତୈଳାକ୍ତ ମାଂସ ବଡ଼ ବଡ଼ କଡ଼େଇରେ ପୂରାଇ ଚୂଲ୍ଲୀରେ ବସାଇଲେ । ହାଡ଼ଗୁଡ଼ିକ ପୃଥକ କରି ଜମାଇ ରଖିଲେ । ବାକି ମାଂସତକ ଘଣ୍ଡ ଦେହରେ ଓହଳାଇ ଦେଲେ—କିଛି ଦିନ ଖରା ଖାଇଲେ, ତାହା ଶୁଖିଯିବ ।

ଚର୍ବିରୁ ସାବୁନ, ସ୍ନୋ ପ୍ରଭୃତି ପ୍ରସ୍ତୁତ ହେବ । ତୈଳାକ୍ତ ମାଂସରୁ ମହମବତି ପ୍ରଭୃତି ଏବଂ ହାଡ଼ରେ ନାନା ପ୍ରକାର ଶିଳ୍ପ କାର୍ଯ୍ୟ ଅଳଙ୍କାର ଓ ଘରର ଦରକାରୀ ଜିନିସ ସବୁ ତିଆରି ହେବ । ଚମଡ଼ାର ମଧ୍ୟ ଭ୍ରତ୍ତିଦା ବହୁତ । କାପ୍‌ଟେନ ଅନୁମାନ କରିଥିଲେ, ଏହି ତିମିଟିରୁ ଆମେ ଦଶ ବାର ହଜାର ଟଙ୍କା ପାଇ-ପାରିବା ।

Digitized by srujanika@gmail.com

ତିମିଟି ତିରିଶ ମିଟର ଲମ୍ବା ଥିଲା ଓ ତାର ଓଜନ ଥିଲା ଷୋଳଶହ ମହଣ ।

ସେଦିନ ଘରରେ ତିମି ମାଂସ ହିଁ ଆମର ପ୍ରଧାନ ଖାଦ୍ୟ ହୋଇଥିଲା । ତାହା ଯେପରି ସୁସ୍ୱାଦୁ ସେହିପରି ରୁଚିକର ।

———

ମୁଦ୍ରାକର—ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ, କଟକ—୨

Digitized by srujanika@gmail.com